# ପଥୁରିଆର କାହାଣୀ



ସ୍ଲାଇଡ୍ ଚଳଚ୍ଚିତ୍ର ନିର୍ମାତା :
ଡିଆଫିଲ୍ମ ଷ୍ଟୁଡିଓ, ୧୯୭୦ ।
ଚିତ୍ରନାଟ୍ୟ : ଆର୍. କୁଶ୍ନେରୋଭିଚ୍ ।
ଚିତ୍ରାଙ୍କନ : ଏ. ଭିନୋକୁରୋଭ୍ ଏବଂ
ଏଲ୍. ଶ୍ଵାର୍ତ୍ସ୍ମାନ୍ ।
କାହାଣୀଟି ତାଜିକସ୍ଥାନର ଏକ
କିମ୍ବଦନ୍ତୀ ଉପରେ ଆଧାରିତ ।

# ପଥୁରିଆର କାହାଣୀ



ପ୍ରଗତି ପ୍ରକାଶନୀ ଭବନ
ମସ୍କୋ



ଦିନେ ପଥୁରିଆ ପାହାଡ଼ କଡ଼ରେ ପଥର କାଟୁଥିଲା । ହଠାତ୍ ସହରୀର ପାଟି ଶୁଣାଗଲା—''ଆଷ୍ଟେଇ ପଡ଼, ଆଷ୍ଟେଇ ପଡ଼ ।''



ଦେଖାଗଲା ଗୋଟିଏ ଧଳା ହାତୀରେ ଚଢ଼ି ମହାପ୍ରତାପୀ ରଜା ଆସୁଛନ୍ତି । ଆଣ୍ଠେଇ ପଡି ପଥୁରିଆ ଭବିଲା—''ରଜା ମୋ ଆଡକୁ ଟିକିଏ ଚାହିଁଲେ ବି ନାହିଁ ।''



"ରଜାଙ୍କର ହାତୀ ମୋ ଠାରୁ ସୁଖୀ, ମୁଁ ଯଦି ହାତୀଟିଏ ହୋଇଥାଆନ୍ତି।" ଦେଖୁ ଦେଖୁ ପଥୁରିଆ ହାତୀ ହୋଇଗଲା ଏବଂ ଗର୍ବରେ ଝୁଲି ଝୁଲି ଚାଲିବାକୁ ଲାଗିଲା ।



ରଜା ଋହ୍ବା ପିଉଥିବା ବେଳେ ହଠାତ୍ ପଥୁରିଆ-ହାତୀର ପିଠି ଉପରେ ଗରମ ଋହ୍ବା ଢାଳିଗଲା । ସେ ଭବିଲା—"ଯଦି ମୁଁ ହାତୀ ନ ହୋଇ ନିଜେ ରଜା ହୋଇଥାଆନ୍ତି ।"



ସଙ୍ଗେ ସଙ୍ଗେ ସେ ରଜା ହୋଇଗଲା ଏବଂ ଧଳା ହାତୀରେ ଚଢ଼ି ବୁଲିବାକୁ ଲାଗିଲା । ସେ ଶାସନ କ୍ଷମତା ଲାଭ କଲା ଏବଂ ମଜାରେ ଗୃହା ପିଇଲା ।



ସେ ଦିନ ଖରା ଏତେ ଟାଣ ହୋଇଥିଲା ଯେ ପଥୁରିଆ-ରଜାର ଆଖି ଝଲସି ଯାଉଥିଲା । ସେ ଭାବିଲା—"ମୋ ଠାରୁ ସୂର୍ଯ୍ୟ ତ ଅଧିକ ଶକ୍ତିଶାଳୀ—ମୁଁ ଯଦି ସୂର୍ଯ୍ୟ ହୋଇଥାଆନ୍ତି ।"



ସତକୁ ସତ ଆକାଶରେ ଏକ ନୂଆ ସୂର୍ଯ୍ୟ ଉଦୟ ହେଲା । ଖରା ଏତେ ଟାଣ ହେଲା ଯେ ପୃଥିବୀର......



......ନଈ ପୋଖରୀ ସବୁ ଶୁଖିଗଲା ଏବଂ ଆକାଶରେ ମେଘ ଘୋଟିଯାଇ ସୂର୍ଯ୍ୟକୁ ଲୁଚାଇ ଦେଲା । ସୂର୍ଯ୍ୟ ରାଗିଯାଇ କହିଲା— "ମୁଁ ମେଘ ହେବାକୁ ଚାହେଁ ।"



ପଥୁରିଆ-ମେଘ ଏହାପରେ ସାରା ଆକାଶରେ ଘୁରି ବୁଲିଲା । ହଠାତ୍ ଖୁବ୍ ଜୋରରେ ପବନ ବହିବାକୁ ଲାଗିଲା ଏବଂ ମେଘକୁ ଉଡାଇ ନେଲା । ମେଘ କହି ଉଠିଲା—"ମୁଁ ପବନ ହେବାକୁ ଇଚ୍ଛା କରେ ।"



ହୁ-ହୁ—ହୋଇ ପବନ ବହିଲା—ଅନେକ ଘରର ଚାଳ ଉଡ଼ିଗଲା ଏବଂ ଅନେକ ଲୋକଙ୍କର ଟୋପି ଆକାଶରେ ଉଡ଼ିବାକୁ ଲାଗିଲା । କିନ୍ତୁ ପବନର ବେଗ ଆହୁରି ବଢ଼ିଗଲା ।



ହଠାତ୍ ଏକ ବଡ ପାହାଡରେ ଧକା
ବାଜି ପବନର ଗତି ବନ୍ଦ ହୋଇଗଲା ।
"ମୁଁ ଗୃହେ·.·.·" କଥା ଶେଷ ନ ହେଉଣୁ.....



....ସେ ଏକ ବଡ଼ ପାହାଡ଼ରେ ପରିଣତ ହେଲା ଯାହାର ଶିଖର ମେଘକୁ ଯାଇ ଛୁଇଁ ପାରୁଛି । ସେ ଏତେ ଉଚ୍ଚରୁ ଦେଖି ପାରିଲା ନାହିଁ ଯେ ପାହାଡ଼ ତଳେ ଅନେକ ଲୋକ ପାଟିତୁଣ୍ଡ କରୁଛନ୍ତି ।



ସେ ଆଉ ମଧ୍ୟ ଦେଖି ପାରିଲା ନାହିଁ
ଯେ ଏକ ବଡ ଗଇନ୍ତି ହାତରେ ଧରି
ପଥୁରିଆ ପାହାଡରୁ ପଥର କାଟୁଛି ।



ପାହାଡ଼ ଭାବିଲା—"ମଣିଷ ହେଉଛି ସବୁଠାରୁ ଶକ୍ତିଶାଳୀ—ମୁଁ ଏଥର ମଣିଷ ହେବାକୁ ଚାହେଁ ।" ଶେଷରେ ସେ ପଥୁରିଆ ହୋଇଗଲା ଏବଂ ପାହାଡ଼ କଡ଼ରେ ପଥର କାଟିବାକୁ ଲାଗିଲା ।



ପୁଣି ଥରେ ପ୍ରହରୀର ପାଟି ଶୁଣା-
ଗଲା—''ଆଷ୍ଟେଇ ପଡ଼ ।''



କିନ୍ତୁ ପଥୁରିଆ ମନେ ମନେ ଭାବିଲା—
"ନା, ମୁଁ ଆଉ ଏପରି କରିବି ନାହିଁ।"

